# ଭାଙ୍ଗି ଭାଙ୍ଗି ଯାଏ ସୁନାର ଭାରତ
# କାନ୍ଦି କାନ୍ଦି କହେ ଗାନ୍ଧୀ



୧୯୯୪

ଲେଖକ:- ଦାସକାଠିଆ ପାଲ୍ ଡାଏର **ଶ୍ରୀ ନେତ୍ରାନନ୍ଦ ବାରିକ**
ଗ୍ରା : ବୃଲଣବାଟିଆ
ପୋ : ଅଳପଣା  ଜ: ମୁଗା
ଜିଲ୍ଲା : ଭଦନପୁର

## —ସହାୟକ—

ପାଲା ଗାୟକ **ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ମହାପାତ୍ର**

ସା : ବଗଳ

ଜି : ପୁରୀ

ପାଲା ଗାୟକ **ଶ୍ରୀ ଧ୍ରୁବଚରଣ ହରିଚନ୍ଦନ**

ସା : ଦାଣ୍ଡି ପାଙ୍ଗଟା

ଜି : ଖୋର୍ଦ୍ଧା

ପାଲା ଗାୟକ **ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ବରିଆଳ**

ସା : ସୁନ୍ଦର

ଜି : ପୁରୀ

**ଅରକ୍ଷିତ ବରିଆଳ ଏବଂ ଭାସ୍କର ସ୍ୱାଇଁ**

ଗୁଳିଶବାଟିଆ,

ପୁରୀ

## —ଲେଖକ ଓ ପ୍ରକାଶକ—

ଦାସକାଠିଆ ପାଲା ଗାୟକ **ଶ୍ରୀ ନେତ୍ରାନନ୍ଦ ବାରିକ**

ସା : ଗୁଳିଶବାଟିଆ

ପୋ : ଅଳସାହା

ଜି : ପୁରୀ

ଭାୟା : ଚନ୍ଦନପୁର

ଓ ଡ଼ ଶା

ରାଗ- **ବଙ୍ଗଳାଶ୍ରୀ**

ମୂଲ୍ୟ- ଟ୨.୫୦

(ଦୁଇଟଙ୍କା ପଚାଶ ପଇସା ମାତ୍ର)

ଜାଣନ୍ତୁ କେତନ          ତଳେ [redacted] ମୋ ଜୀବନ
ପଣ ଏହି ମହାବାହୁ,
ଦେଶ ଜନନୀର          ଦୁର୍ଗତି ନାଶନେ
ଏ କ୍ଷୁଦ୍ର ପରାଣ ଜାଉ ॥ ୧ ॥

ଆହା ଗାନ୍ଧୀ ବୁଢ଼ା          କେତେ କଷ୍ଟ ଲଭି
ଏ ଦେଶ କଲେ ସ୍ୱାଧୀନ,
ଏ ଦେଶ ଜନତା          ଭୁଲିଗଲେ ତାହା
ଅଦ୍ଭୁତ ପର ବର୍ତ୍ତନ ॥ ୨ ॥

କେତେ କାରାବାସ          ଭୋକ ଉପାସକୁ
ସହିଲେ ଭାରତବାସୀ,
ବନ୍ଧୁକ ବାଣରେ          ଗଲ୍ କେତେ ପ୍ରାଣ
ହେବଜ୍ଞେ କହ କାହିଁକି ? ॥ ୩ ॥

କାଷ୍ଠେସୁ ନିର୍ମିତ          ତିନୋଟି ମର୍କଟ
ମୁଖ ନେତ୍ର କର୍ଣ୍ଣ ମୁଦ,
ମନ୍ଦ ଦେଖିବନା          ମନ୍ଦ ଶୁଣିବନା
ମନ୍ଦ ଭାଷା ନକହିବ ॥ ୪ ॥

ମନ୍ଦ ଦେଖିବାରେ          ମନ୍ଦ ଶୁଣିବାରେ
କହିବାରେ ମନ୍ଦଭାଷା,
ଏ ଅନ୍ଧ ମନୁଷ୍ୟ          ଏପରି ହେବେକି
ଗାନ୍ଧୀଙ୍କ ନଥିଲା ଆଶା ॥ ୫ ॥

ହେ ଭାରତବାସୀ          ଏଇଥି ପାଇଁକି
ଏ ଦେଶ ହେଲା ସ୍ୱାଧୀନ ?
ଆପଣା ଭିତରେ          ନାହିଁ ବୁଝାମଣା
କାହିଁକି ହୁଅ ଅଜ୍ଞାନ ? ॥ ୬ ॥

ଦାନବ ହୃଦୟ          ଶାସନ କ୍ଷମତା
ଦୁର୍ନିତିର ଗନ୍ତାଘର,
ସ୍ୱାଧୀନ ବଦଳେ          ପରାଧୀନ ପ୍ରାଣେ
ଲଭୁଛନ୍ତି ହାହାକାର ॥ ୭ ॥

ରଜାର ଧର୍ମକୁ ପ୍ରଜା ଅନୁସରେ
ରାଜାଏ ହେଲେ ଶୋଷକ,
ଶାସନ କର୍ତ୍ତାର ଦୁର୍ବଳତା ଦେଖି
ଦୁଷ୍ଟେ ମୋଡ଼ିଲେଣି ନଖ ॥ ୮ ॥

ଶାସନ ଦଣ୍ଡକୁ କୋହଳ କରିବା
ଏହା ନୁହେଁ ରାଜଧର୍ମ,
ତେଣୁ ରାଜମାନ୍ତ ଦେଖି ଦୁଷ୍ଟମନ୍ତ
ଆଚରନ୍ତି ଅପକର୍ମ ॥ ୯ ॥

ସରଳ ପ୍ରାଣରେ ଗରଳ ଭରନ୍ତି
ଗ୍ରାମେ ଗ୍ରାମେ ଟାଉଟର,
ଆହା ଏ ଦେଶର ଏ ଦୁର୍ଗତି ଦେଖି
ପ୍ରାଣରୁ ନଯାଉ ମୋର ॥ ୧୦ ॥

କାକ ଯହିଁ ରାଜା ବକ ଯହିଁ ମନ୍ତ୍ରୀ
ହଂସକୁ ପଚ୍ଚରେ କିଏ ?
ମାଙ୍କଡ଼ ରନ୍ଧିଲେ ବ୍ୟଞ୍ଜନ ଗୁଳନେ
ମୂନବ ପ୍ରାଣକ ରହେ ? ॥ ୧୧ ॥

ଲୋକ ଦେଖାଣିଆ ବାହାର କରନ୍ତି
ଭିତରେ ମୋଡ଼ନ୍ତି ପେଚ,
ହାୟ ଭଗବାନ ! ଆଉ କେତେଦିନେ
ହେବ ଏମାନଙ୍କ ମୂଳପୋଛ ? ॥ ୧୨ ॥

କାକ କରେ ଦୋଷ ଦଣ୍ଡପାଏ ହଂସ
ଏ ଅଟେ ଅନ୍ୟାୟ ପ୍ରଥା,
ଅମର ଆତ୍ମା କାନ୍ଦୁଛି ମହାତ୍ମାଙ୍କ
ବଳିବାରୁ ଗୁରୁବ୍ୟଥା ॥ ୧୩ ॥

ଅଭାବ କଷଣେ ରାଜକୋଷୁ ଧନ
ନେଲ ବାଣ୍ଟିବା ପାଇଁ,
ବାଣ୍ଟିବା ଧନ ସୂତରେ ସୂତରେ
ରଖିଲ ଆପଣା ପାଇଁ ॥ ୧୪ ॥

ପଡ଼ଯାଏ ମନ ପଞ୍ଜାବ କେଶରୀ
ରଣଜିତ ସିଂହ କଥା,
ଅଭବେ ବୃଦ୍ଧାର ପଳଙ୍କ ଚିତ୍ର
ଫଟାଇ ଦେଲା ଯା ମଥା ॥ ୧୫ ॥

କ୍ରୋଧ ପରବଶେ ରଣଜିତ ସିଂହ
ନାଜକୁ କଲେ ଧିକାର,
ମୋ ଦେଶେ ଅଭାବ କହଣ ରହିଛି
ରାଜପଣ ମୋ ଅସାର ॥ ୧୬ ॥

କୁଟିଖାଇ କାଟି ପିନ୍ଧିବା ପାଇଁକି
ଥିଲା ଯେଉଁ ଉପଦେଶ,
କୁଟିବା ଚଳେଣି କାଟିବା ଗଲେଣି
ସେସବୁ ହେଲାଣି ଶେଷ ॥ ୧୭ ॥

ବିଦେଶୀ ବନ୍ଦନା ବଢ଼ାଏ ଅଭାବ
କେହି ନ ପାରିଲେ ଜାଣି,
ବିଳାସ ବ୍ୟସନେ ଆଳସ୍ୟ ଜୀବନେ
ବଢ଼ିଲେ ତସ୍କର ଶ୍ରେଣୀ ॥ ୧୮ ॥

ଆଜ ମିଛ ଲାଞ୍ଚ ବଢ଼ିଛି ବହୁତ
କଳଙ୍କର ପ୍ରାବଲ୍ୟ,
କପାଳରେ କର କାନ୍ଦିବା ହି ସାର
ଯନ୍ତ୍ରଣା ଲଭେ ଦୁର୍ବଳ ॥ ୧୯ ॥

ସୁଖ ସୁନ୍ଦରୀଙ୍କ କାରବାର ଏଠି
ମୂରୁଗି ମାଂସର ଭୋଜ,
ନିରୀହ ପ୍ରାଣୀଙ୍କୁ ଦଣ୍ଡନ୍ତ ଦାନବେ
କାଳାନ୍ତକ ସମସାଜ ॥ ୨୦ ॥

ସହି ହେଉ ନାହିଁ ରହି ହେଉ ନାହିଁ
ଆହା କେଡ଼େ କଲବଲ,
ହେ ବିଶ୍ୱ ବିଧାତା ଏହି ଦୃଶ୍ୟ ଦେଖି
ତୁମକୁ ଲାଗେ କି ଭଲ ? ॥ ୨୧ ॥

ଯେଉଁ ଅନାବାଦୀ ଗୋଚର ଭୂମିରେ
ସମସ୍ତଙ୍କ ଯାତାୟତ,
କେଉଁ ଆଇନରେ ଧନକ ଦାମ୍ଭିକେ
କରନ୍ତ ନଜ ଆୟତ ? ॥ ୨୨ ॥

ଆହା ଗୋରୁ ମାତା ଲଭୁଛନ୍ତ ବ୍ୟଥା
ଚରିବାକୁ ନାହିଁ ସ୍ଥାନ,
ଯେଉଁ ଗୋରୁ ସେବା ଫଳରେ ବୈକୁଣ୍ଠେ
ହୃଷିକେଶ ଦ୍ୟନ୍ତ ସ୍ଥାନ ॥ ୨୩ ॥

ମିଳୁଥାଏ ଅନ୍ନ ବସନ ବାସ ଯେ
ରୋଗ ବ୍ୟାଧି ହୁଏ ଦୂର,
ସ୍ତନ୍ୟଦାନ ଦେଇ ପାଳଇ ମଣ୍ଷକ
ତା ନେତେ ଲୋତକ ଧାର ॥ ୨୪ ॥

ହଡ଼ା ବଳଦଙ୍କୁ କଂସେଇ ଖାନାକୁ
ବନ୍ଦୀ କରିବାର ଫଳ,
କୂଳଯିବ ଧ୍ୱଂସ ହେବ ହା ହତାଶ
ନ ମିଳିବ ଅନ୍ନ ଜଳ ॥ ୨୫ ॥

ହୁ ହୁ ହୋଇ ବଢି ଯାଉଅଛୁ
ସାମଗ୍ରୀ ଦର ବଜାରେ,
ବାଣିଜ୍ୟ ଛଉବେ ଗ୍ରେବ କାରବାର
କଏବା ତାହାକୁ ଧରେ ? ॥ ୨୬ ॥

ଅପ ମିଶ୍ରଣରୁ ଭୟାବହ ବ୍ୟାଧି
ସମାଜେ ହେଉଛି ସୃଷ୍ଟି
ଜୀବନ ରକ୍ଷକ ଭେଷଜ ଭେଜାଲ
କେହ୍ବତ ନଦେଲ ଦୃଷ୍ଟି ॥ ୨୭ ॥

ଜଉତୁକ ପ୍ରଥା ସମାଜୁ ଉଠିଲା
କେହ୍ବତ ମାନଲେ ନାହିଁ,
ଗରିବ ଜନର ଝିଅ ହେଲେ ବୁଢ଼ୀ
ଦେଖୁନକ ନେତା ଭାଇ ? ॥ ୨୮ ॥

ଜନ୍ମ ନିୟନ୍ତ୍ରଣ ସୁନ୍ଦର ଯୋଜନା
କାହିଁକି ମାନବେ ଭାଇ,
ପ୍ରଜାଙ୍କୁ ଆକଟି ଶୋଷଣ ପଥରେ
ଶାସକ ମନ୍ଦା ଛାଡ଼ଇ ॥ ୨୯ ॥

ଗାଁ ଗାଁଙ୍କରେ ସ୍କୁଲ ଖୋଲିଛି
ପାଠ ପଢ଼ିବାର ପାଇଁ,
ମନଯୋଗ ଦେଇ ପଢ଼ାଉ ନାହାଁନ୍ତି
ଆଜର ଶିକ୍ଷକ କେହି ॥ ୩୦ ॥

ଯେଉଁ ଶିଶୁଗଣ ଦେଶ ଭବିଷ୍ୟତ
ହେଲେ ମୂର୍ଖ ଅଶିକ୍ଷିତ,
କହେବ କହେବ କୁହହେ ଜନତା
ଏସବୁ କାହାର ଦୋଷ ? ॥ ୩୧ ॥

ଚାରି ପାଞ୍ଚ ମାସ ଉତାରେ ଦରମା
ପାଆନ୍ତି ଶିକ୍ଷକେ କାହିଁ ?
ମୂଳ କାମ ସାରି ମଜୁରି ଉଛ ର
ମନକୁ ପ୍ରଫୁଲ୍ଲ ଥାଇ ॥ ୩୨ ॥

କୃଷକ ବଞ୍ଚିଲେ ଦେଶ ବଞ୍ଚାଇବ
ନ ବୁଝରେ ସ୍ୱାର୍ଥବାଦୀ,
ବନ୍ୟା ବାତ୍ୟା ବାଢ଼ି ଦାଉ କବଳରେ
ପଡ଼ି ସେ କାନ୍ଦୁଛି ଆଜ ॥ ୩୩ ॥

ବ୍ୟବସାୟୀ ମୂଲିଆ ଗରିବ ଗ୍ରାହକ
କରିଲ ତାଙ୍କୁ ଶୋଷଣ,
ତାହାଙ୍କୁ ସାହାଯ୍ୟ କରିବାକୁ କ'ଣ
ରାଜକୋଷୋ ନାହିଁ ଧନ ॥ ୩୪ ॥

ପିତା ମାତା ଉପଦେଶକୁ ସନ୍ତାନେ
କରୁଛନ୍ତି ବେଖାତର,
ଦୋଷ ଦେଖି ପିତା ମାତା ଆକଟିଲେ
ପୁଣେ କରନ୍ତି ପ୍ରହାର ॥ ୩୫ ॥

ପିତା ମାତା ଗୁରୁ ଜନଙ୍କୁ ନମାନ
ଆୟୁଷ ହୁଅଇ ନାଶ,
ଅତେଇ ବନକୁ ବଡେଇ ଦେଖାଇ
ଅଳ୍ପାୟୁଷେ କବ ଧ୍ୱଂସ ॥ ୩୬ ॥

ଶୁଦ୍ର ଅନ୍ଧ ମୁନ ଅନ୍ଧୁଣୀ ପତ୍ନୀଙ୍କ
ପୁତ୍ର ଶ୍ରବଣ କୁମାର,
ପିତା ମାତା ସେବା କର ପ୍ରାଣ ଦେଲ
ଶୁଣିନ କ କର୍ଣ୍ଣ ତୋର ? ॥ ୩୭ ॥

ହାସ୍ୟ ହରେଇମା ଜାଳଇ ମେଦାଗ୍ନ
ଗଞ୍ଜା ଭାଙ୍ଗ ସାଙ୍ଗ ମେଳେ,
ବିଡ଼ି ସିଗ୍ରେଟ ମ ରଣ ଫାସ ଜାଣି
କାହିଁକି ବାନ୍ଧୁଛ ଗଳେ ? ॥ ୩୮ ॥

ଭାଇ ରକ୍ତେ ଭାଇ ହୋଉ ଖେଳୁଛନ୍ତ
ପୁତ୍ର ରକ୍ତେ ଖେଳେ ପିତା,
ସ୍ୱାମୀ ଥାଉଁ ସ୍ତ୍ରୀସ୍ୱ ସାଜେ ବୀର ନାଷ୍ଟ
ସ୍ୱାମୀ ଆଉକି ଦେବତା ? ॥ ୩୯ ॥

ଯେତେ ଅରକ୍ଷଲେ ଅଣ୍ଟି ବିକ ଆଜ
ଲକ୍ଷ୍ମୀଛଡ଼ା ହେଲ ଦେଶ,
ଧୋଇ ମରୁଡ଼ରୁ ହା ଅନ୍ନ ଚିତ୍କାର
ଏ ତୋର ଅର୍ଜିଲ ଦୋଷ ॥ ୪୦ ॥

ସତ୍ତା ସାବର୍ତ୍ତୀଙ୍କ କାହାଣୀ ଭଜଣୀ
ମାନେତ ଗଲେଣି ଭୁଲି,
ସିନେମା ଦେଖିବା ଛଳନା କାରଣ
ଲଜ୍ଜା ଗଲେଣି ଗୁଳି ॥ ୪୧ ॥

ପାଷାଣ୍ଡୀ କନ୍ୟାକୁ ପାଷାଣ୍ଡି ଯୁବକ
ଲଅଭ ମ୍ୟାରେଜେ ନେଲେ,
ବାସ୍ତାକଡ଼ ପାରୁ ବଣ ନର୍ଦ୍ଦ ମାଳେ
ଭୂଟଙ୍କଙ୍କ ଶବ ମିଳେ ॥ ୪୨ ॥

ନାଗ୍ରୀ ଚରିତର ସୀମାରେଖା ଟପି
ଜବାର ଉଦ୍ଧତା ବଳେ,
ନାରୀ ନର୍ଯ୍ୟାତନା ଘଟୁଛି ଅନେକ
କୌତୁକର ସମତାଳେ ॥ ୪୩ ॥

ଏହି ଦୁଇ ବ୍ୟାଧି ଅମର ଔଷଧ
କାୟ, ମନ, ବାକ୍ୟ ଭନ,
ସେବା କାର୍ପଣ୍ୟ ସତ୍ତମ ଫଳରେ କରୁ
ଅସାଧ ନାହିଁ ମେଦନୀ ॥ ୪୪ ॥

ଏ କଥାରେ ଯେବେ ନ ବଦଳେ ନାରୀ
ନର୍ଯ୍ୟାତନା ଅନବାର
ଦୂଷିତା ଉଦରେ ଖାଣ୍ଟ ପୁତ୍ର ଗର୍ଭେ
ଜନ୍ମିବେତ କୁଳାଙ୍ଗାର ॥ ୪୫ ॥

ପିତା ମାତା ଉପଦେଶ ନ ମାନନ୍ତି
ମାନନ୍ତି ପତ୍ନୀ ଆଦେଶ,
ସ୍ୱର୍ଗାଦପି ମାଆ ଧର୍ମମସ୍ତୁ ପିତା
ଏ ଯୁଗେ କାହିଁକି ବିଷ ? ॥ ୪୬ ॥

ରାମ ଗଲେ ବନ ନେଇକ ସିଂହାସନ
ରଖିବାକୁ ପିତାପଣ,
ଭରତ ପୂଜନ୍ତି ଭାଇଙ୍କ ପାଦୁକା
ଏ କେଡେ ମହତ୍ତ୍ୱପୂର୍ଣ୍ଣ ॥ ୪୭ ॥

କୋର୍ଟ କଚେରୀ ଲାଞ୍ଚ ଖଚ ମିଛ
ହୁଏ ଅନ୍ୟାୟ ବିଚାର,
ବାଟ ଯାର ନାହିଁ ପରାଜିତ ସେହି
ଧନକେ ବଡ ଠାକୁର ॥ ୪୮ ॥

ଶିକ୍ଷାକେନ୍ଦ୍ର ଯେତେ ଖୋଲନ୍ତି ସର୍କାର
କୁ ଶିକ୍ଷାରେ ଗଲେ ଜନ,
ଏପରି ଜନଙ୍କ ଗଳା ଚିପିବାକୁ
ଡାକଲେଣି ସୁଦର୍ଶନ ॥ ୪୯ ॥

ଗୀତା ଭାଗବତ ପିତା ଲାଗିଲେଣି
ମୂଲ୍ୟ ନାଇ ପଣ୍ଡରେ,
ପୁରୁଣାରୁ ଯିନା ନୂତନ ଉପୃତ
ଜାରଜ ମିଥ୍ୟା ସ୍ୱର୍ଗରେ ॥ ୫୦ ॥
ଜପ ତପ ଦାନ ଜଣ୍ଡ କମିଲେଣି
କ୍ରମେ ହୋଇଯିବ ଲୋପ,
ଲଙ୍କାରେ ଶ୍ରୀରାମ ନାମ ଉଚ୍ଚାରଣ
ଦାନବ ମଣାନ୍ତି ଦୁଃଖ ॥ ୫୧ ॥
ଦେଲେ ସନମାନ ମିଳେ ସନମାନ
ମାନ ସମ୍ମାନ ତ ନାହିଁ,
କହୁ କଦର୍ଯ୍ୟ ଭାଷାକୁ ମୂର୍ଖ ଜନ
ସର୍ବେ ମୁଖରେ କହି ॥ ୫୨ ॥
ଅତିଥି ଯାହାଙ୍କ ଦୁଆରୁ ଫେରଇ
ନରଣ ମନରେ କେବେ,
ଦେ ଜନ୍ମାର୍ଜିତ ପୂନ୍ୟଫଳ ନେଇ
ଚାଲି ଯାଇଥାନ୍ତି ତେବେ ॥ ୫୩ ॥
ଠେଙ୍ଗା ଉଚ୍ଚାରଣ ଭିକ୍ଷୁକ ଜନଙ୍କୁ
ପ୍ରହାର କରନ୍ତି କେହି,
ୟୋରେ ଛତର ଯାଉନାହିଁ ବନ୍ଧା
କୁକୁର ଦାନ୍ତ ଲଗାଇ ॥ ୫୪ ॥
ନାରୀ ଧରଷଣ ପକେଟ ମାରୁରେ
ପୁରବକ ଭାଇ ପେଟ ?
ପର ଝିଅ ବୋହୂ ନିଜ ମାଆ ସମ
ବୁଝି ନପାର ଲମ୍ପଟ ॥ ୫୫ ॥
ଯେଉଁ ନାରୀ ପାଇଁ ମହୀଁଷା ରାବଣ
ଶାନାଶ ଚନ୍ଦ୍ରେ କଳଙ୍କ,
ଇନ୍ଦ୍ର ସଶ୍ର ଜୋମା ଦ୍ରୌପଦୀଙ୍କ ବେଣୀ
ଦୁଃଶା ରକ୍ତରେ ରଞ୍ଜିତ ॥ ୫୬ ॥

ଗୀତାରେ ଶ୍ରୀକୃଷ୍ଣ        ଅର୍ଜ୍ଜୁନେ କହନ୍ତ
ଅଧର୍ମର ଧ୍ୱଂସ ପାଇଁ,
ଯୁଗେ ଯୁଗେ ଜନ୍ମି        ଭାରତ ଅଙ୍କରେ
ଧର୍ମ ସ୍ଥାପନ କରଇ ॥ ୫୭ ॥

ଅଖିଳକ ସେହି        କାଳ ଦେଶବାସୀ
ଆଗୁ ସାବଧାନ ହୁଅ,
ଧୀରଙ୍କ ରକତରେ        ସମତା ସ୍ଥାପିଣ
ତନ ଦେବତାଙ୍କୁ ଧାଅ ॥ ୫୮ ॥

ଆହା ଏ ମରତ        ଧାମରେ ମାନବ
ସମାଜ ଏତେ ଦୁଷିତ,
ସର୍ବ ପ୍ରାଣୀ ପରେ        ଶ୍ରେଷ୍ଠ ବୋଲି ଜାଣି
ପଶୁ ବୃତ୍ତି ଆଚରୁଛ ? ॥ ୫୯ ॥

ମଣିଷ ଚୋମଣି        ଉଜ୍ୱଳ କରନ୍ତା
ଅନ୍ଧାର ଜଆସ ପର,
ସ୍ୱର୍ଗର ସମ୍ପଦ        ପୂରି ଯାନ୍ତା ଏଠି
ସ୍ୱରଗ ସାଜନ୍ତା ଧରା ॥ ୬୦ ॥

ସୁନା ଭାରତକୁ        ଚୂନା କରି ଦେବେ
ଜଣାଯାଏ ଅଳ୍ପଦିନେ,
ଏଦେଶ ସୁରକ୍ଷା        କିଏ କେ କରିବ
ଗାନ୍ଧୀ ବୁଢ଼ା ଦୁଃଖେ ଭଣେ ॥ ୬୧ ॥

ଯେଉଁ ଜନ ପାଇଁ        ବିଦେଶୀ ତଡ଼ିଲେ
ସେ ଆଜ ଗଲେ ଓଲଟି,
ଅଣ୍ଟି ଛୁରୀ ଚଣ୍ଟି        କାଟିଲି ପରସ୍ପେ
ଏହି କଥାଟି ବୁଝେଁକ ? ॥ ୬୨ ॥

ଯେଉଁ ଦେଶେ ରାମ        କୃଷ୍ଣ ଭୀଷ୍ମଦ୍ରୋଣ
କୋଟି କୋଟି ମହାବୀର,
ଏ ପୂନ୍ୟ ଭାରତ        ଅଙ୍କେ ଜନ୍ମିଥିଲେ
ଶୁଣିବନକ କର୍ଣ୍ଣ ତୋର ॥ ୬୩ ॥

ନାନା ବିଭବରେ ତୋ ଦେଶ ପୂରିଛୁ
ମଣନା ମନେ ଦୁର୍ବଳ,
ଯୋଡ଼ା 'ରତ୍ନ କେତେ ସାଇତିଛୁ ଅଙ୍କେ
ତୋ ଭାଗ୍ୟ ପରି ବିଶାଳ ॥ ୭୪ ॥
ଲୌହ, ମାଙ୍ଗାନିଜ ଗ୍ରାଫାଇଟ୍, ଅଭ୍ର
ବକ୍ସାଇଟ ଯେ କୋଇଲ,
କ୍ରୋମାଇଟ୍, ଲିଖ ଚୂନପଥର ଯେ
ପ୍ରଚୁର ମୁଗୁନି ଶିଳା ॥ ୭୫ ॥
ପାଟ, ମଠା, ଧୋତି, ବସ୍ତ୍ର ଉପସ୍କର
ତୋ ଦେଶେ ଅଭାବ ନାହିଁ,
ତୁମ ଧନେ ତୁମେ ଧନୀ ନ ହୋଇଣ
ନିର୍ଧନ ହୁଅ କିମ୍ପାଇଁ ? ॥ ୭୬ ॥
ଅଙ୍ଗ, ବଳଙ୍ଗ, ବ୍ରାହ୍ମଣୀ, ବୈତରଣୀ
ମହାନଦୀ ଉପତ୍ୟକା,
ମଳୟ, ମେଘାସନ, ଗନ୍ଧ ମାଦନ
ଶୃଙ୍ଗ ଯେ ମାଙ୍କୁଡ଼ ନଗ ॥ ୭୭ ॥
ପ୍ରପାତ ମାନତ କେତେ ଛବିଳରେ
ଜଙ୍ଗଲରୁ କେତେ ବଳ,
ତଳେ ଅଛି ଏତେ ଉପରେ ରହିଛି
ଶାଳ ଆଉ ପିଆଶାଳ ॥ ୭୮ ॥
ସତବଇ ବାଉଁଶ, ଲିଖ, ମହୁଲ ଯେ
ମହୁ ଆଦି ତୈଳବୀଜ,
ମତ୍ସ୍ୟ, ଲବଣ ପ୍ରବଳ ଅଛି ଯେ
ନଦୀ ନାଳ ସିନ୍ଧୁ ଗର୍ଭ ॥ ୭୯ ॥
ପୁରୀ, କୋଣାରକ, ମଥୁରା ଦ୍ୱାରକା
ଗୋପ ବୃନ୍ଦାବନ ଆଦି,
ଦର୍ଶନୀୟ ସ୍ଥାନ ଅନେକୁ ଅନେକ
ମନ୍ଦିର ମାଳମା ସାଜ ॥ ୮୦ ॥

ବିଜ୍ଞାନୀ ମାନବ ଚନ୍ଦ୍ରୁ ମଙ୍ଗଳ
ଯୁଟେର ସୌର ପରିବାରେ,
ଭୁମ ହିତ ପାଇଁ ନୂଆ ତଥ୍ୟ ସଦା
ଖୋଜଇ ମହାକାଶରେ ॥ ୭୧ ॥

ଘଙ୍କି ଯାଉଛି ସୁନାର ଭାରତ
କାନ୍ଦ କହେ ଗାନ୍ଧୀ ବୁଢ଼ା,
ସୁନା ପିଞ୍ଜରାର ମାଣିକ ଶୁଆଲେ
ହେଲେଣି ବଣ କୁକୁଡ଼ା ॥ ୭୨ ॥

କାହିଁକ କାହିଁକ କାହିଁକରେ ମୂର୍ଖ
ମାନବ ଯାଇଛୁ ଶୋଇ,
ନୂତନ ଭାରତ ଗଢିଦେବା ଆସ
ଦୁର୍ନୀତି ରଖିବା ନାହିଁ ॥ ୭୩ ॥

ଦେଖିଲି ସ୍ୱପନ ଗାନ୍ଧୀ ବୁଢ଼ା ବସି
କହୁଛନ୍ତି ମୋର କାନେ,
ଲେଖରେ କବିତା ମୋ ଭାରତ ମାତା
ଅସହ୍ୟ ଦୁଃଖ ନାଶନେ ॥ ୭୪ ॥

ଲେଖ ଲେଖ ଭାଷ ନକର ଅଳସ
ଜନ ଜାଗରଣ ହେଉ,
ସାଜୁ ସତ୍ୟ ଶାନ୍ତି ଦୟା କ୍ଷମା ମୈତ୍ରୀ
ଧରଣୀ ଦୁର୍ଗତି-ଯାଉ ॥ ୭୫ ॥

କ ସୁନ୍ଦର ତାଙ୍କ ଖଣ୍ଡ ପିନ୍ଧା ଅଙ୍ଗ
ଦେଖି ନଥିଲି ଜୀବନେ,
ଦେଖିଲି ସେ ରୂପ ଚଷମା ନୟନ
ଶୁଭେ-ସୁନିଦ୍ରା ସ୍ୱପନେ ॥ ୭୬ ॥

ଜନମି ନଥିଲି ଏ ଧର୍ମ ଧାମରେ
ନାମ ଶୁଣୁଥିଲି ମାତ୍ର,
ଜାତିର ଜନକ ମୋହନ ଦାସଙ୍କୁ
ଜୀବନ୍ତେ ଦେଖେନି ନେତ୍ର ॥ ୭୭ ॥

ଉଠି ତତ୍‌କ୍ଷଣ ଭାବ କ୍ଷଣକ୍ଷଣ
ଶ୍ରୀ କରେ ଘେନି କଲମେ,
ଲେଖିଲ ସଚେତକ ଦୂର ହେବ ବ୍ୟାଧି
ଲିଖିତ ସୁଧା ମଲମେ ? ॥ ୭୮ ॥

ଓଡ଼ିଆ ପୁଅ ମୁଁ ଓଡ଼ିଆ ମୋ ଭାଷା
ଜାଗରେ ଓଡ଼ିଆ ପୁଅ,
କରରେ ଶପଥ ପୋଛିବାକୁ କରେ
ଜନନୀ ନୟନରୁ ଲୁହ ॥ ୭୯ ॥

ମୂରୁଖ ଯୁବକ ନଷ୍ଟଳା ବୃଷ ପେ
ଗାଁରୁ ସହରେ ଥାନ୍ତି,
ଲମ୍ବକୁ ତୁଳସୀ ତୁଳସୀକୁ ଲମ୍ବ
ଦାନ କଣା ଏ କହନ୍ତ ॥ ୮୦ ॥

ପର ଘର ଭଙ୍ଗା ଦଗଲ ବାଜରେ
ଖାଇଲ ସୁନାର ଦେଶ,
ତୁମ ପିତୃ ପିତା ନର୍କରେ ଥାଆନ୍ତୁ
ତୁମେ ତ କୁଳ କଳଙ୍କ ॥ ୮୧ ॥

ସିଂହ ପିଉଥାଏ ଗଜ କୁମ୍ଭ ଶର
ବସାଡ଼ି ସାମ୍ବୁଡ଼େ ହେଂସ,
ଧିକ ତୁମ ପିତା ଧିକ ତୁମ ମାତା
ଜୀବନକୁ ଶତଧିକ ॥ ୮୨ ॥

କନ୍ତୁ ବିଦ୍ୱଜନ ନରବ, ମଉନ
ଗମ୍ଭୀର ଭାବରେ ଥାନ୍ତି,
ଶଙ୍ଖ ପଦ୍ମପ୍ଲେ ଫର୍ଫର ନହୋଇ
ଜଗତ ହିତ ଚନ୍ତନ୍ତ ॥ ୮୩ ॥

ସିନେମା, ଥେଟର, ରେଡ଼ିଓ, ଭିଡିଓ
ଦୂରଦରଶନ ଆଦି,
ଖଳନାୟକ, ନାୟିକା ଟାଉଟରେ
ଶେଷେ ମରୁଥାନ୍ତି କାନ୍ଦି ॥ ୮୪ ॥

ନାହାଁନ୍ତିରେ ଆଜି   ଗାନ୍ଧୀ, ଗୋପବନ୍ଧୁ
ଧରମା, ବାଜି ରାଉତ,
ଗୋବର ଗଦାରୁ   କଇଁ ଫୁଟିବକି
ଯିବଏ ଦେଶର ଦୁଃଖ ? ॥ ୮୫ ॥

ହିନ୍ଦୁ, ମୁସଲ୍‌ମାନ,   ବଉଦ୍ଧ, ଜଇନ,
ଶିଖ୍ ଆଉ କିରସ୍ତାନ
ତିରଙ୍ଗା କେତନ   ତଳେ ଠିଆ ହୋଇ
ଆମେ ସରବେ ସମାନ ॥ ୮୬ ॥

ଆସ ଗୁଜରାଟି,   ଆସହେ ମରାଠି,
ଆସ ଦ୍ରାବିଡ଼, ଉତ୍କଳୀ,
ଆସ ହିମାଚଳ   ପଞ୍ଜାବ, କେରଳୀ
ବଙ୍ଗ-ସିନ୍ଧୁ-ହୁଅ ମେଳ ॥ ୮୭ ॥

ଭେଦଭାବ ଭୁଲି   ହାତକୁ ମିଳାଅ
ଆମେ ସବୁ ଭାଇ ଭାଇ,
ପ୍ରଗତି ପଥରେ   ପାଦ ପକାଇବା
କାନ୍ଧରେ ହସ୍ତ ପକାଇ ॥ ୮୮ ॥

ଡମ୍ବରୁ ବାଜିଲେ   ନାଗ ଟେକେ ଫଣା
ଧଣ୍ଡ କି ଟେକିବ ବେକ,
ବାଆ କଲେ ବସା   ଦୋହଲୁଥାଏ ତ
ବାଇଆ ମଣନ୍ତି ସୁଖ ॥ ୮୯ ॥

କୋଟି କୋଟି ତାରା   ଗଗନେ ରହିଲେ
ଚନ୍ଦ୍ରମା ପରି କୁହାଁନ୍ତି,
ଜୁଳୁଜୁଳା ପୋକ   ଆଲୋକ ଦେଖାଇ
ଅନ୍ଧାର କି ନାଶିପାରନ୍ତି ॥ ୯୦ ॥

ଜାଗ ଜାଗ ଦେଶ   ମାନ୍ୟବର ନେତା
ଶାସନ ସୁଦୃଢ଼ ହେଉ,
ଅଧର୍ମ ବିନାଶ   ଧର୍ମର ବିକାଶ
ଏ ଦେଶ ଅଗ୍ରରେ ଥାଉ ॥ ୯୧ ॥

ଶ୍ୱେଅଣ୍ଟ ଉଠାଇ ନୋଅଣ୍ଟ ଚଢାଇ
ଶାନ୍ତିରେ ଶୋଇଲେ ଘରେ,
କେଉଁଠେ କଳବଳ ହୁଆନ୍ତି ଜନତା
ଦେଖୁଛ କେବେ ନେତ୍ରରେ ? ॥ ୯୨ ॥

ମୋ ଦେଶ କିଶୋର ଜାଣିଉଠ ସତ୍ୱେ
କଲେଜ ପଢୁଆ ପୁଅ,
ଆସରେ ଆସରେ ପୋଛିଦେବା କରେ
ଦେଶ ମାଆ ନେତ୍ରୁ ଲୁହ ॥ ୯୩ ॥

ସ୍ନେହ ସଦଭାବ ନାହିଁ ଏଠି ଆଜ
ଖୋଟିଲେଣି ଘୋର କଳି,
ଜାଗ ଜାଗ ବନ୍ଧୁ ପାପିଷ୍ଠ ବିନାଶେ
ଦିବ୍ୟ ଅସ୍ତ୍ର କରେ ଧରି ॥ ୯୪ ॥

ସନ୍ତ୍ରାସବାଦୀଙ୍କ ନିର୍ମୂଳ ସକାଶେ
ଆସିବାରେ ଅବତରି;
ଜାଳନ୍ତୁ ଧରି ମୁକ୍ତଣ୍ଡି ପକାନ୍ତି
ଯାଉନ୍ତୁ ସହି ନପାରି ॥ ୯୫ ॥

ସର୍ବସୁନ୍ଦରୀ ମାଗୋ ଧରଣୀ ଜନନୀ
ଏ ଭୂମି କପାଳ ଲେଖା,
ଯିବ ଏଦୁଃ ଦିନ ଆସିବ ସୁଦିନ
ସେଦିନ କର ଅପେକ୍ଷା ॥ ୯୬ ॥

ସତ୍ୟ ଶାନ୍ତି ମୈତ୍ରୀ କହନ୍ତୁ ଧରଣୀ
ମାତାଙ୍କ ଯାଉ ଶୋଚନା,
ନାସ୍ତିକ ଧାର୍ମିକ ପାପିଷ୍ଠ, ଲମ୍ପଟ
ଦେଲେ ଅନେକ ଯାତନା ॥ ୯୭ ॥

ବ୍ରହ୍ମ ନୀଳ ସୁନ୍ଦର କନ୍ଦର ବାନ୍ଧବ
ବଳଭଦ୍ର ସୁଭଦ୍ରାଇ,
ବନ୍ୟା ବାତ୍ୟା ବହ୍ନି କ୍ଷୟକୁ ରଖଦେ
ବାହାକୁ ପ୍ରସାରି ଦେଇ ॥ ୯୮ ॥

ହେ ଶାନ୍ତିର ମିତା    ଜଗତ କଲ୍ୟାଣେ
ଯାହା କଲ୍ପିଲ ଚେତାଇ,
ସାଥି ତୁମ ଧ୍ୟାନେ    ଅନୁପ୍ରାଣି ହେବେ
କାମନା ମାନବଙ୍କ ଏହି ॥ ୯୯ ॥

ଏ ଦୀନ ଲେଖକ    କଲମ ମୂନରେ
ଲେଖଇ ଜଗତ ହିତ,
ଦେଉନ ନମସ୍କାର    ଦେଶବାସୀ ମୋର
ଶ୍ରୀ ମନ୍ଦିର ଜଗନ୍ନାଥ ॥ ୧୦୦ ॥

— ସମାପ୍ତ —